# ନିଃସଙ୍ଗ କ୍ରୌଞ୍ଚ

ଲୋକନାଥ ମିଶ୍ର (ଭରଦ୍ୱାଜ)



"ମା ନିଷାଦ ପ୍ରତିଷ୍ଠା ତ୍ୱମାଗମ ଶାଶ୍ୱତି ସମା,
ଯତ୍ କ୍ରୌଞ୍ଚ ମିଥୁନାଦେକମବଧୀ କାମମୋହିତମ୍" ॥

# ନିଃସଙ୍ଗ କ୍ରୌଞ୍ଚ

ଲୋକନାଥ ମିଶ୍ର (ଭରଦ୍ୱାଜ)



"ମା ନିଷାଦ ପ୍ରତିଷ୍ଠା ତ୍ୱମାଗମ ଶାଶ୍ୱତି ସମା,
ଯତ୍ କ୍ରୌଞ୍ଚ ମିଥୁନାଦେକମବଧି କାମମୋହିତମ୍" ।।

ସଂକଳନର ନାମ-ନିଃସଙ୍ଗ କ୍ରୌଞ୍ଚ

ରଚୟିତା- ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)

ଜନ୍ମସ୍ଥାନ- କୋରପିଠା ଗ୍ରାମ, ଓଡ଼ଗାଁ, ନୟାଗଡ଼

ବାସସ୍ଥାନ- ବାଣୀ ନିକେତନ (ନିତ୍ୟାନନ୍ଦ ସାହି)
ଓଡ଼ଗାଁ, ସା/ପୋ- ଓଡ଼ଗାଁ, ନୟାଗଡ଼
ମୋ- ୯୪୩୭୮୮୨୭୬୯

ଜନ୍ମ ତାରିଖ- ୧୫.୦୩.୧୯୩୭

ରଚନା ସମୟ- ୨୦୦୫-୦୬

ମୁଦ୍ରଣ କାଳ- ୨୦୧୩

ପ୍ରଥମ ସଂସ୍କରଣ- ୨୦୧୩ (୧୦୦୦ ଖଣ୍ଡ)

ପ୍ରଚ୍ଛଦ ଏବଂ ଡି.ଟି.ପି- ମନ, ଓଡ଼ଗାଁ, ନୟାଗଡ଼

ପ୍ରକାଶକ- ତୁଷାର କୁମାର ମିଶ୍ର

ମୁଦ୍ରଣ - ଶ୍ରୀ କୃଷ୍ଣ ଆର୍ଟପ୍ରେସ୍, ନୟାଗଡ଼

ମୂଲ୍ୟ- ଟ ୨୦.୦୦ (କୋଡ଼ିଏ ଟଙ୍କା ମାତ୍ର)

Name of the Book- Nihsanga Crounch.

Writer- Lokanath Mishra

Date of Birth- 15.03.1937

Place of Birth- Korapitha, Odagaon, Nayagarh

Present Address- Bani Niketan, Nityananda Sahi,
Odagaon, Nayagarh, M- 9437882769

Period of Writing- 2005-06

Period of Publication- 2013 (1000 Copies)

Published By- Er. Tushar Ku. Mishra

D.T.P & Cover- Mana, Odagaon, Nayagarh

Printed at- Sri krushna Art Press, Nayagarh

Price- Rs. 20/- (Twenty Rupees Only)

# "ଏକେଲା ଚଲୋରେ"

ବୈକୁଣ୍ଠବିହାରୀ ମିଶ୍ର (ଓଡ଼ଗାଁ, ନୟାଗଡ଼)
(ଅ.ପ୍ରା. ବିଜ୍ଞାନ ଶିକ୍ଷକ ମଧ୍ୟଖଣ୍ଡ ହାଇସ୍କୁଲ)

ନଦୀ ତୀରରେ ଚକୋର ଚକୋରୀ ମନ ଆନନ୍ଦରେ କ୍ରୀଡା କରୁ କରୁ ହଠାତ୍ ନଇଁ ଆସେ ସଞ୍ଜ । ବନବାସିନୀ ସୀତା ଦେବୀଙ୍କ ଦ୍ୱାରା ଅଭିଶାପ ଗ୍ରସ୍ତ ହୋଇ ଥିବାରୁ ହଠାତ୍ ସେମାନଙ୍କର ବିଚ୍ଛେଦ ଘଟେ ସେଇ ରାତିକ ପାଇଁ । ରାତିସାରା ଚକୋର ଚକୋରୀ ନଦୀର ଉଭୟ ତୀରରେ ବିଳାପ କରନ୍ତି – "ଏ ରାତି କେବେ ପାହିବ ? ପୁଣି ସିନ୍ଦୁରା ଫାଟିଲେ ଉଭୟଙ୍କର ମିଳନ ହେବ ।"

ସଞ୍ଜ ଆସିବା ଆଗରୁ ଚଢେଇଟି ନୀଡକୁ ବାହୁଡିବା ସମୟରେ ଦିଗହରା ହୋଇ ରାତିସାରା ଏକ ଅଜ୍ଞାତ ସ୍ଥାନରେ ବସି ବିଳାପ କରେ, ତା'ର ସାଥୀ ବସାରେ କ'ଣ କରୁଥିବ ? କେମିତି ସେ ରାତି କଟୁଥିବ ? ନୀଡରେ ଥିବା ସାଥୀଟି ବିଳାପ କରେ ତା'ର ହଜିଲା ସାଥୀ ପାଇଁ- "କେତେବେଳେ ଏ ରାତି ପାହିବ, ତା'ର ସାଥୀଟି ତା ପାଖକୁ ଫେରି ଆସିବ ।"

କିନ୍ତୁ ଲୋକନାଥ ଭାଇନାଙ୍କ ଆଗରେ ଯେଉଁ ଅନ୍ଧାର ରାତି ପହଞ୍ଚିଛି ସେତ ଆଉ ପାହିବନି । ଭାଉଜତ ଆଉ ସେ ହଜିଲା ସ୍ଥାନରୁ ବାହୁଡିବେନି । ପିଲାଏ ଦୂରେ କର୍ମ କ୍ଷେତ୍ରରେ । ବିରାଟ ସୁସଜ୍ଜିତ ଘରେ ଏକାକୀ । ସେଇଠି ଦିନ, ସେଇଠି ରାତି । ଆଲେକ୍‌ଜାଣ୍ଡର ସେଲ୍‌କିର୍କ୍‌ଙ୍କ ଭାଷାର ଓଡ଼ିଆ ଅନୁବାଦ ଥିଲା -

ଦେଖଇ ନେତ୍ର ଯାହା ଚଉଦିଗର
ସେ ସର୍ବର ଅଟଇ ମୁଁ ଅଧୀଶ୍ୱର ।
ମହିମଣ୍ଡଳେ ନାହିଁ ଏମନ୍ତ ଜନ
ମୋ ଅଧିକାର ବଳେ କରିବ ରଣ ।।

ତାଙ୍କ ଘର ପାଖରେ ଆମ ଘର, ହେଲେ ମଧ୍ୟ ମୁଁ ତାଙ୍କ ପାଖକୁ ସବୁ ସମୟରେ ଯାଇ ପାରେ ନାହିଁ । ମଝିରେ ମଝିରେ ଗଲେ ଦେଖେ,

ଏକାକୀ କ'ଣ ସବୁ ଲେଖୁଥାନ୍ତି କିମ୍ବା ବିଭିନ୍ନ ବହି ବା ପତ୍ର ପତ୍ରିକା ଧରି ରେଖାଙ୍କିତ କରୁଥାନ୍ତି ।

ଦିନେ ତାଙ୍କ ପାଖରେ ବସି କଥା ହେଲା ବେଳେ ମୁଁ ତାଙ୍କ ନିକଟରୁ କିଛି ପାଣ୍ଡୁଲିପିର ଏକ ଫାଇଲ୍ ଦେଖିଲି ଏବଂ ତାକୁ ଘରକୁ ଆଣି ପଢିଲି । ଭାଇନାଙ୍କୁ ପଚାରିଲି "ଏସବୁ ଅପ୍ରକାଶିତ ରହିଲା କାହିଁକି ?" ଏଇ ନିର୍ଦ୍ଦିଷ୍ଟ ଲେଖାଟିକୁ ପଢିବାକୁ ପ୍ରକାଶ କରି ଦେବା ନିମନ୍ତେ ପ୍ରସ୍ତାବ ଦେଲି ।

ନିଜର ଏକାକୀ ଜୀବନର ଏକାକୀ ମନକୁ ବୁଝେଇବାକୁ କିଏ କେତେବେଳେ କାନ୍ଦିଛନ୍ତି ସେ ଲେଖଛନ୍ତି ଯଥା –

କାନ୍ଦିଥିଲେ ମାତା କୌଶଲ୍ୟା ଝୁରି ଝୁରି ରାମଙ୍କୁ ।
ଦଶରଥ ପ୍ରାଣ ତେଜିଲେ ଝୁରି ଝୁରି ରାମଙ୍କୁ ।।
କାନ୍ଦିଥିଲେ ରାମ ବନରେ ଯଥା ସୀତା ବିହୁନେ ।
ବୃକ୍ଷଲତା ପଶୁ ପକ୍ଷୀଙ୍କୁ ପୁଛି ବିକଳ ମନେ ।।

ନିଜ ମନକୁ ବୁଝେଇବାକୁ ଲେଖିଛନ୍ତି–

"ଆନନ୍ଦ ଧାମରେ ଆନନ୍ଦେ ଥାଏ ପରମାନନ୍ଦ
ସୃଷ୍ଟିକର୍ତ୍ତା ହୋଇ ଦେଖେ ସେ ନିଜ ସନ୍ତାନ କାନ୍ଦ ।
ସୃଷ୍ଟି କରି ନିଜ ସନ୍ତାନେ ସେ ତ କନ୍ଦାଇ ଥାଏ
କେଜାଣି କିଅବା ସେଥିରୁ ସେ କି ଆନନ୍ଦ ପାଏ ?"

କବିତା ମଧ୍ୟରେ ନିଜକୁ ବୁଡେଇ ରଖି ଜୀବନର ଯନ୍ତ୍ରଣାକୁ ଭୁଲି ଯିବା ପାଇଁ ମଧ୍ୟ ଭବିଷ୍ୟତ ପରିକଳ୍ପନାକୁ ଏଥିରେ ପ୍ରକାଶ କରିଛନ୍ତି ।

ସେ ପାଇଁ ନାହିଁ ମୋ ଶୋଚନା ଦିଅ ବିବେକ ବୁଦ୍ଧି
ବିଶ୍ୱଜନ ହିତେ ଲେଖିବି କବିତା ନିରବଧି ।
ଅନ୍ୟାୟ ଅନୀତି ଦୁର୍ନୀତି ଭ୍ରଷ୍ଟାଚାର ବିରୁଦ୍ଧେ
କରିବି ସଂଗ୍ରାମ ସର୍ବଦା ମୋ ଲେଖନୀ ଆୟୁଧେ ।।

ପଦସଂଖ୍ୟା ୮୦ ରୁ ୧୨୪ ପର୍ଯ୍ୟନ୍ତ ପଦମାନଙ୍କର ସୁନ୍ଦର ଭାବରେ କବିତା ମାଧ୍ୟମରେ ସୂଚେଇ ଦେଇଛନ୍ତି ପୁରାତନ କବିମାନେ କିପରି

ଓ କେଉଁ କବି ଲେଖକମାନେ ତାଙ୍କର କାଳଜୟୀ ରଚନା ମାନଙ୍କ ଦ୍ୱାରା ଅମର ହୋଇ ରହିଛନ୍ତି ଓ ତାଙ୍କ ରଚନା ମାନ ଜାଜ୍ୱଲ୍ୟମାନ ହୋଇ ରହିଛି ।

ସବୁଠାରୁ ଅଧିକ ହୃଦୟ ଗ୍ରାହୀ ହୋଇଛି ଓଡ଼ଗାଁର ପବିତ୍ର ମାଟିର ପବିତ୍ର ଇତିହାସର ବର୍ଣ୍ଣନା । ଶ୍ରୀ ରାମଚନ୍ଦ୍ର ବନବାସରେ ଗମନ କଲାବେଳେ ପତ୍ନୀ ସୀତା ଦେବୀ ଓ ଭାଇ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ଅତ୍ରି ମୁନୀଙ୍କ ଆଶ୍ରମରେ ପହଞ୍ଚିଥିଲେ । କଳିଯୁଗରେ ଓଡ଼ଗାଁରେ ସେ କିପରି ପୂଜା ପାଇବେ ତାର ବର୍ଣ୍ଣନା ଏଇ କବିତାଟିରେ ସବିଶେଷ ସ୍ଥାନପାଇଛି । ପ୍ରଭୁ ଶ୍ରୀରାମ, ମାସୀତା ଓ ଶ୍ରୀଲକ୍ଷ୍ମଣ ଠାକୁରଙ୍କର ପୂଜା ଓ ଏଠାରେ ମନ୍ଦିର ସ୍ଥାପନର ଇତିହାସ ଏଇ କବିତାରେ ସନ୍ନିବେଶିତ ହୋଇଅଛି ।

ବଗ ବଗୁଲି ବୃକ୍ଷ ଡାଳରେ ବସି ମନ ଆନନ୍ଦରେ କ୍ରୀଡା କରୁଥିବା ବେଳେ ଅଲକ୍ଷ୍ୟରେ କାଳରୂପୀ ବ୍ୟାଧର ତୀରରେ ବଗୁଲୀର ବଧ ହୋଇଗଲା । ଦୁଃଖରେ ଭାଙ୍ଗି ପଡିଲା ବଗଟି । ବିକଳରେ ଉଡିବୁଲିଲା ଏ ଡାଳକୁ ସେ ଡାଳ । ଲୋଟି ପଡୁଥଲା ବଗୁଲି ଉପରେ । ଫାଟି ଯାଉଥିଲା ତା'ର ହୃଦୟ । ବଗର ଦୁଃଖକୁ ସମ୍ଭାଳି ପରିନଥିଲେ ମହାଋଷି ବାଲ୍ମିକୀ । ତାଙ୍କର କ୍ରୋଧ ଭାବକୁ କବିତା ଆକାରରେ ସେ ବ୍ୟାଧ ଆଗରେ ପ୍ରକାଶ କରିଦେଲେ । ତହାଥିଲା ଏ ସଂସାରର ପ୍ରଥମ କବିତା "ଶୋକରୁ ଶ୍ଳୋକ" ।

"ମାନିଷାଦ ପ୍ରତିଷ୍ଠା ତ୍ୱମାଗମ ଶାଶ୍ୱତିସମା
ଯତ୍‌କ୍ରୌଞ୍ଚମିଥୁନାଦେକମବଧି କାମମୋହିତମ୍ ।।"

ଏହାପରେ ରଚିତ ହୋଇଥିଲା ବିଶ୍ୱବିଖ୍ୟାତ ମହାକାବ୍ୟ "ରାମାୟଣ"। ସେତେବେଳେ ବଗ (କ୍ରୌଞ୍ଚ) ପକ୍ଷୀର ସାନ୍ତ୍ୱନା ଦାତା ଥିଲେ ମହର୍ଷି ବାଲ୍ମିକୀ କିନ୍ତୁ ଭାଇନାଙ୍କ ପାଇଁ ? କେହି ବାଲ୍ମିକୀ ନାହାନ୍ତି । ସେହିଁ ଜଣେ "ନିଃସଙ୍ଗ କ୍ରୌଞ୍ଚ ।" କବିତା ହିଁ ତାଙ୍କର ବାଲ୍ମିକୀ । ତାହାହିଁ ତାଙ୍କର ଭବିଷ୍ୟତ ଜୀବନର ପାଥେୟ ଓ ବଂଚିବାର ରାହା ।

ବିଶ୍ୱଗୁରୁ ରବୀନ୍ଦ୍ରନାଥଙ୍କ ଭାଷାରେ-

"ଯଦି ତୋର୍ ଡାକ୍ ଶୁନେ କେଉ ନା ଏସେ
ତବୁ ଏକେଲା ଚଲୋରେ ।
ଏକେଲା ଚଲୋ ଏକେଲା ଚଲୋ
ଏକେଲା ଚଲୋରେ ।।"

## ଆଦ୍ୟ କଥନ

"ନିଃସଙ୍ଗ କ୍ରୌଞ୍ଚ"ର କବିତା ୧୯୯୪-୯୬ ରେ ରଚିତ । ଦୀର୍ଘଦିନ ଧରି ଅପ୍ରକାଶିତ ଭାବରେ ପଡ଼ିରହିଥିବା ଏକ ବିଦଗ୍ଧ ହୃଦୟର ଗାଥା କବିତା । ନିଃସଙ୍ଗ ଜୀବନର ଦୁଃଖ ଓ ଯନ୍ତ୍ରଣା ଜର୍ଜରିତ ବେଦନା ବିଧୁରିତ ମନର ମର୍ମଲିପି । ବନବାସୀ ନିଷାଦ ର ଶରାଘାତରେ କ୍ରୌଞ୍ଚ ବିହଙ୍ଗୀର ନିଧନ ପରେ, ସାଥୀହରା ନିଃସଙ୍ଗ କ୍ରୌଞ୍ଚର ସକରୁଣ ବିଳାପ ଯେପରି ବ୍ୟଥିତ କରିଥିଲା ମହାମୁନି ବାଲ୍ମୀକିଙ୍କୁ, ପ୍ରାଣପ୍ରିୟା ପତ୍ନୀଙ୍କୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ହରାଇ ବିରହ ବିଧୁର କବି ବ୍ୟଥିତ ହୃଦୟରେ ସେପରି ଅତୀତର ସ୍ମୃତିଚାରଣ କରି ବିଳାପ କରିଛନ୍ତି , ସୀତା ହରଣ ସମୟରେ ଶ୍ରୀରାମ ଓ ସତୀ ସୀତାଙ୍କ ପରି ଏବଂ ବସ୍ତ୍ରହରଣ ସମୟରେ ଦ୍ରୌପଦୀଙ୍କ ପରି । ପବିତ୍ର ଓଡ଼ଗାଁରେ ବିରାଜିତ ପ୍ରଭୁ ରଘୁନାଥଙ୍କୁ ଦୈନନ୍ଦିନ ଦର୍ଶନକରି ଶେଷ ଜୀବନ ଈଶ୍ୱର ଚିନ୍ତାରେ ଅତିବାହିତ କରିବାର କାମନା ବ୍ୟସନା ଅଦୃଷ୍ଟର ବିଡମ୍ବନାରେ ପରାଭୂତ । ବିପଥଗାମୀ ସମାଜର କଲ୍ୟାଣ ସାଧନ ପାଇଁ, ତଥା ସମାଜକୁ କିଛି ବାର୍ତ୍ତା ଓ ଦିଗ୍‌ଦର୍ଶନ ଦେବା ପାଇଁ, କବିତା ରଚନା କରି ଅବଶିଷ୍ଟ ଆୟୁଷ ଅତିବାହିତ କରିବା କାମନାରେ, ଅତୀତର ବିଷ୍ଣୁଅଂଶୀ କବି ଲେଖକମାନଙ୍କ ଠାରୁ ଆଶୀର୍ବାଦ ଭୀକ୍ଷା କରିଛନ୍ତି କବି ।

ସର୍ବଶେଷରେ ଅଂଗପ୍ରତ୍ୟଙ୍ଗ ଚଳତ୍‌କ୍ଷମ ଏବଂ ଶରୀର ସୁସ୍ଥ ଥିବା ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କରି ଜୀବନର ଇତି ହେବା ପାଇଁ ପ୍ରଭୁ ଶ୍ରୀରଘୁନାଥ ଙ୍କୁ ପ୍ରାର୍ଥନା କରିଛନ୍ତି । ପ୍ରଭୁ ରଘୁନାଥ ଶେଷ ଇଛା ପୂରଣ କରନ୍ତୁ, ଏହାହିଁ କାମନା ।

ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ ।

*// ଇତି //*

*ରଚୟିତା*

*କବି ଲୋକନାଥ ମିଶ୍ର (ଭରଦ୍ୱାଜ)*



# "ସମର୍ପଣ"

କରୁଣାଳୟ, ବରୁଣାଳୟ ମର୍ଯ୍ୟାଦା ପୁରୁଷୋତ୍ତମ, ପରଂବ୍ରହ୍ମ ଶ୍ରୀ ଶ୍ରୀ ରଘୁନାଥ ମହାପ୍ରଭୁଙ୍କୁ ଜୀବନର ଶେଷ ଇଚ୍ଛା ବିନମ୍ର ନିବେଦନ କରି, "ନିଃସଙ୍ଗ କ୍ରୌଞ୍ଚ"କୁ ତାଙ୍କରି ଚରଣ କମଳରେ ସମର୍ପଣ କରୁଛି ।

*// ଇତି //*

*ଜୟ ଶ୍ରୀରଘୁନାଥ*

*ବିନୀତ ରଚୟିତା*

ଲୁହରେ ଲେଖୁଛି "କବିତା"
ବସି ମୁଁ ନିତିନିତି
ନିଃସଙ୍ଗ ଜୀବନେ କରିଛି
ତାକୁ ଜୀବନ ସାଥୀ ॥୧॥
ମନକଥା ଖୋଲି କହୁଛି
ତାକୁ ନିରୋଳେ ବସି
କବିତା ସୁନ୍ଦରୀ ତୁମେ ମୋ
ମନ ଆକାଶ ଶଶି ॥୨॥
ହରାଇଛି ସବୁ ଜୀବନେ
ମାତ୍ର ତୁମକୁ ଛାଡ଼ି
ପାରିବିନି ପ୍ରାଣ ବାୟୁ ମୋ
ଯିବା ପର୍ଯ୍ୟନ୍ତ ଉଡ଼ି ॥୩॥
ତୁମେ ଏକା ଦେଇ ପାରିବ
ମୋର ଜୀବନେ ଶାନ୍ତି
ତୁମ ବିନା ଆଉ ନାହିଁ ମୋ
ଅନ୍ୟ ବଂଚିବା ଗତି ॥୪॥
ତୁମେ ଏକା ଅଟ ପାଥେୟ
ମୋର ଶେଷ ଜୀବନେ
ତେଣୁ ସ୍ତ୍ରୀ କବିତା ତୁମକୁ (ମୋ)
ଛାଡ଼ି ନପାରେ ଦିନେ ॥୫॥
ଯେତେ ଯାହା ସବୁ ଘଟିଛି
ମୋର ଗତ ଜୀବନେ
କହିଛି, କହୁଛି, କହିବି
ନିତି ନୀର ନୟନେ ॥୬॥

ମନ ଉପବନେ ଜଳୁଛି
          ଚିତା ଅନଳ ମୋର
"ଦଗ୍ଧ ଫୁଲବନ" ମାଳୀ ମୁଁ
          ହୃଦେ ବେଦନା ଘୋର ॥୭॥
ଯନ୍ତ୍ରଣାରେ ହୋଇ ଅତିଷ୍ଠ
          ଢ଼ାଳେ ନୟନୁ ନୀର
ଫୁଲବନ ଗଲା ଉଜୁଡ଼ି
          ପ୍ରାଣ ହୁଏ ଅସ୍ଥିର ॥୮॥
ବହୁ ଦୁଃଖ କଷ୍ଟେ ବଢ଼ାଇ
          ଥିଲି ଯେ ଫୁଲବନ
ଜଳି ପୋଡ଼ି ତାହା ନିମିଷେ
          ହୋଇଗଲା ଶ୍ମଶାନ ॥୯॥
କାହାକୁ କହିବି ଖୋଲି ମୋ
          ଅନ୍ତରର ବେଦନା
ସବୁ ଚିହ୍ନା ମୁହଁ ମୋପାଇଁ
          ଆଜି ଅଟେ ଅଚିହ୍ନା ॥୧୦॥
ପୂର୍ବ ପରିଚୟ ନିଜର
          ଆଜି ଅଛି ହରାଇ
ଦୁନିଆଁ ଆଖିରେ ଅଲୋଡ଼ା
          ହୋଇ ରହିଛି ମୁହିଁ ॥୧୧॥
ସୁଖ ଶାନ୍ତି ସବୁ ଜୀବନୁ
          ମୋର ଗଲା ଉଭେଇ
ବ୍ୟଥିତ ପ୍ରାଣ ମୋ ମଥିତ
          ସଦା ଉଡ଼ି ନଯାଇ ॥୧୨॥

ବିହଙ୍ଗ ଯୁଗଳ ସଦୃଶ
ନୀଡ଼ ରଚନା କରି
ସୁଖେ ବିତୁଥିଲା ଜୀବନ
ଆମ ଦିବାଶର୍ବରୀ ।।୧୩।।
ବଜ୍ରପାତ ହେଲା ସହସା
ନୀଡ଼ ଗଲା ମୋ ଭାଙ୍ଗି
ପର ପାରେ ଚାଲି ଗଲା ମୋ
ଛାଡ଼ି କ୍ରୌଞ୍ଚ ବିହଙ୍ଗୀ ।।୧୪।।
ତପସ୍ୟାରେ ରତ ବାଲ୍ମୀକି
ମୁନି ତମସାତୀରେ
ନିପତିତ କ୍ରୌଞ୍ଚ ବିହଙ୍ଗୀ
ମୃତ, ନିଷାଦ ତୀରେ ।।୧୫।।
କରୁଣ କ୍ରନ୍ଦନ କ୍ରୌଞ୍ଚର
ଶୁଣି ଭାଙ୍ଗିଲା ଧ୍ୟାନ
ଅଶ୍ରୁସିକ୍ତ ନେତ୍ରେ ବ୍ୟାଧରେ
କଲେ ଶାପ ବିଧାନ ।।୧୬।।
"ଅଳ୍ପାୟୁଷ ହୁଅ" ନିଷାଦ
କ୍ରୌଞ୍ଚ ବିହଙ୍ଗୀ ଯେଣୁ
ବଧ କଲୁ କାମ ମୋହିତ
ଥିବା ସମୟେ ତେଣୁ ।।୧୭।।
ପୃଥିବୀର ସର୍ବ ପ୍ରଥମ
ହେଲା ଶୋକରୁ "ଶ୍ଳୋକ"
"ଆଦିକବି" ହେଲେ ବାଲ୍ମୀକି
ରଚି ବିଷାଦେ ଶ୍ଳୋକ ।।୧୮।।

"ରାମାୟଣ" କାବ୍ୟ କାରୁଣ୍ୟ-
ରସେ କରି ରଚନା
"ସର୍ବଶ୍ରେଷ୍ଠ କାବ୍ୟ" ମାନ୍ୟତା
ପ୍ରାପ୍ତ ସେ ମହାମନା ।।୧୯।।

କାଳରୂପୀ ବ୍ୟାଧ ବଧିଲା
କ୍ରୌଞ୍ଚ ବିହଙ୍ଗୀ ମୋର
ନାହାନ୍ତି ବାଲ୍ମୀକି ମହର୍ଷି
ଭୋଗେ ଯାତନା ଘୋର ।।୨୦।।

ନାହିଁ କେ ଦେବାକୁ ଶାନ୍ତ୍ୱନା
ଆଉ ସମବେଦନା
ମିଳେ ଉପହାସ, ବିଦ୍ରୁପ
ଆଉ ସମାଲୋଚନା ।।୨୧।।

ସାଥିହରା କ୍ରୌଞ୍ଚ ବିହଙ୍ଗ
ସମ ବିଳାପ କରି
ଦିବସ ରଜନୀ ବିତାଏ
ମନସ୍ତାପରେ ମରି ।।୨୨।।

ପ୍ରାରବ୍ଧ କର୍ମର ଫଳ ମୁଁ
ଭୋଗ କରୁଛି ରହି
ଭୋଗିବାକୁ ଯାହା ଭାଗ୍ୟରେ
ମୋର ଲେଖିଛି ବିହି ।।୨୩।।

ହତବୁଦ୍ଧି ଜ୍ଞାନ ମନମୋ
ସଦା ହୁଏ ବିବସ
ଜାଣେନି କେମିତି କଟିବ
ଅବଶିଷ୍ଟ ଆୟୁଷ ।।୨୪।।

ଏକୁଟିଆ ସାରା ଦୁନିଆଁ
ଲାଗେ ବିଷ ସମାନ
ବଂଚିବାରେ ନାହିଁ ଆଗ୍ରହ
ଦୁର୍ବିସହ ଜୀବନ ।।୨୪।।
କିଏ ବା ବୁଝିବ ଜୀବନେ
ହୃଦୟର ବେଦନା
କେତେଦିନ ଆଉ ଭୋଗିବି
ଦୁଃଖ କଷ୍ଟ ଯାତନା ।।୨୬।।
ପିଞ୍ଜରାରେ ପକ୍ଷୀ ସଦୃଶ
ବନ୍ଦି ହୋଇ ମୁଁ ଏକା
ନିଃସଙ୍ଗ ଜୀବନେ ପାଉଛି
ସଦା ଦାରୁଣ ଧକ୍କା ।।୨୭।।
ସୁଖ ଶାନ୍ତି ନାହିଁ ଜୀବନେ
ନିଃସଙ୍ଗତା କେବଳ
ହରାଇଛି ସବୁ ଯେତେ ମୋ
ଥିଲା ମନର ବଳ ।।୨୮।।
କରିବାକୁ କିଛି ଆଗ୍ରହ
ଆଉ ନାହିଁ ମୋ ମନେ
ପଙ୍ଗୁ ହୋଇ ଗଲି ଆଜି ମୁଁ
କାର ପ୍ରେରଣା ବିନେ ।।୨୯।।
ମନ ବିହଙ୍ଗ ମୋ ଖୋଜିଲା
ଯେବେ ଜୀବନ ସାଥୀ
ମିଶିଲା ମୋ ସଙ୍ଗେ ବିହଙ୍ଗୀ
ଏକ ସରଳ ମତି ।।୩୦।।

ଅତି ନିଷ୍କପଟ କୋମଳ
ହୃଦ ମନ୍ଦିରେ ତାର
ଦେବତା ପରାଏ ପୂଜିଲା
ଦିନେ ନଭାବି ପର ।।୩୧।।
ମୋ ସୁଖରେ ସୁଖୀ ହୋଇଲା
ମୋର ଦୁଃଖରେ ଦୁଃଖୀ
ମୋ ଠାରେ ତା ମନ ପରାଣ
ଦେଲା ଅଚିରେ ବିକି ।।୩୨।।
ମୋ ମୁହଁରେ ହସ ଦେଖି ସେ
ହସି କହିଲା କଥା
ମୋ ମନରେ ଦୁଃଖ ଦେଖିତା
ପ୍ରାଣେ ଲାଗିଲା ବ୍ୟଥା ।।୩୩।।
କର୍ତ୍ତବ୍ୟରେ ଗଲେ ବାହାରେ
ନିତି ଫେରିବା ପଥ
ଚାହିଁ ବସିଥାଏ ନଖାଇ
ହୋଇ ସେ ବ୍ୟତିବ୍ୟସ୍ତ ।।୩୪।।
ନଥିଲା ଅଧିକ ଶିକ୍ଷା ତା
ମାତ୍ର ପୁରାଣ ପଢ଼ି
ଅଧ୍ୟାତ୍ମିକ ଚିନ୍ତା ଚେତନା
କର୍ମେ ଥିଲା ସେ ଜଡ଼ି ।।୩୫।।
ଦେବା ଦେବୀ ଗୁରୁଜନ ରେ
ଥିଲା ଭକ୍ତି ତା ଚିତ୍ତେ
ଦୁଃଖୀରଙ୍କୀ ପ୍ରତି ସଦୟ
ଥିଲା ସେ ଅନୁବ୍ରତେ ।।୩୬।।

ମାନ ଅଭିମାନ ନକରି
ଗୃହ ଜଂଜାଳ ସାରି
ସହାସ୍ୟ ବଦନେ ମୋ ସଂଗେ
ମିଶି ଯାପେ ଶର୍ବରୀ ।।୩୭।।
ନଥିଲା ସିନା ସେ ସୁନ୍ଦରୀ
ସ୍ୱର୍ଗ "ଉର୍ବଶୀ" ସମ.
ଜନମି ଥିଲା ସେ ମର୍ତ୍ତ୍ୟରେ
ବହି "ଉର୍ବଶୀ" ନାମ ।।୩୮।।
ରୂପନଥିଲେ ବି ଗୁଣରେ
କରି ଖୁସି ସଭିଙ୍କୁ
ହୋଇଥିଲା ପ୍ରିୟ ପାତ୍ରୀ ସେ
ଘର ଓ ବାହାରକୁ ।।୩୯।।
ଝୁରୁଛନ୍ତି ତେଣୁ ସରବେ
ତାର ବିହୁନେ ଆଜି
କବିତା ମୁଁ ବସି ଲେଖୁଛି
ଝୁରି ତା ଗୁଣ ରାଜି ।।୪୦।।
ଯେତେ ମୁଁ ଭାବୁଛି ଭୁଲିବି
ଜମା ପାରୁନି ଭୁଲି
ସେତେ ବେଶୀ ମନେ ପଡୁଛି
ସଦା କାନ୍ଦୁଛି ଝୁରି ।।୪୧।।
କାନ୍ଦିଥିଲେ ମାତା କୌଶଲ୍ୟା
ରାମଗଲେ ବନକୁ
ଝୁରି ଝୁରି ପ୍ରାଣ ତେଜିଲେ
ଦଶରଥ ରାମଙ୍କୁ ।।୪୨।।

କାନ୍ଦିଥିଲେ ପ୍ରଜା ସକଳ
ସୀତା,ରାମ ବିହୁନେ
ଅଯୋଧ୍ୟାରେ ପ୍ରଜା ପାଳନ୍ତୁ
ରାମ ନଯାନ୍ତୁ ବନେ ॥୪୩॥
କାନ୍ଦିଲେ ଭରତ ରାଜ୍ୟକୁ
ରାମ ଫେରିବା ପାଇଁ
ଋଷି ବେଶେ କଲେ ଶାସନ
ନନ୍ଦିଗ୍ରାମରେ ରହି ॥୪୪॥
ସିଂହାସନେ ରଖି ପାଦୁକା
ଭାବି ଶ୍ରୀରାମ ରାଜା
ତ୍ୟାଗ କରି ରାଜ ପୋଷାକ
ରାଜ୍ୟେ ପାଳିଲେ ପ୍ରଜା ॥୪୫॥
ପଞ୍ଚବଟୀ ବନୁ ସୀତାଙ୍କୁ
ନେଲା ରାବଣ ହରି
କାନ୍ଦିଥିଲେ ସତୀ ବୈଦେହୀ
ରାମ ଲକ୍ଷ୍ମଣ ସ୍ମରି ॥୪୬॥
କିପରି ପାଇବେ ବାରତା
ରାମ ଆଶ୍ରମେ ଫେରି
ଉଦ୍ଧାରିବେ ମୋତେ ଲଙ୍କାରୁ
ଦୁଷ୍ଟରାବଣ ମାରି ॥୪୭॥
କାନ୍ଦିଥିଲେ ରାମ ବନରେ
ଯଥା ସୀତା ବିହୁନେ
ବୃକ୍ଷଲତା ପଶୁ ପକ୍ଷୀଙ୍କୁ
ପୁଛି ବିକଳ ମନେ ॥୪୮॥

ଜାଣିଛ କି ସୀତା ବାରତା
କାହିଁ ଗଲା କେ ନେଲା ?
ଦୁଷ୍ଟ ବନ୍ୟଜନ୍ତୁ ଅଥବା
ରାକ୍ଷସ କେ ଖାଇଲା ॥୪୯॥
ଜଟାୟୁ ଠାରୁ ସେ ବାରତା
ପାଇ ହେଲେ ଆଶ୍ୱସ୍ତ
ଲଙ୍କାର ରାବଣ ବଧିଣ
ସୀତା ହୋଇଲେ ପ୍ରାପ୍ତ ॥୫୦॥
କାନ୍ଦିଥିଲେ ମାତା ଦେବକୀ
କଂସ ବନ୍ଦୀ ଶାଳାରେ
ଛଅଟି ସନ୍ତାନ ମାରିଲା
କଚାଡ଼ି ସେ ଶିଳାରେ ॥୫୧॥
ଅଷ୍ଟମ ସନ୍ତତି ବିଜୁଳୀ
କନ୍ୟା ହାତରୁ ଖସି
ତୋତେ ଯେ ମାରିବ ବଢ଼ୁଛି
ଗୋପେ କହିଲା ହସି ॥୫୨॥
କାନ୍ଦିଥିଲେ ମାତା ଯଶୋଦା
ଆଉ ଗୋପର ବାଳୀ
ଘେନିଗଲା ଯେବେ ଅକ୍ରୁର
ରାମ ଓ ବନମାଳୀ ॥୫୩॥
କାନ୍ଦିଥିଲେ କୁରୁ ସଭାରେ
ଯଥା ଦ୍ରୋପଦୀ ସତୀ
ଦୁଃଶାସନ ବସ୍ତ୍ର ହରଣ
କାଳେ କୃଷ୍ଣଙ୍କୁ ଚିନ୍ତି ॥୫୪॥

କାନ୍ଦିଥିଲେ ସାରା ଭାରତ
ବାସୀ ଗାନ୍ଧି ବିହୁନେ
ନାଥୁରାମ ଗୁଳି ଚୋଟରେ
ଗଲେ ସ୍ୱର୍ଗ ଭୁବନେ ।।୫୫।।
କେତେ କିଏ କାନ୍ଦେ ଏଠାରେ
ଏ ଯେ କାନ୍ଦିବା ସ୍ଥାନ
କାନ୍ଦିବା ପାଇଁକି ମରତେ
ସର୍ବେ ହୁଅନ୍ତି ଜନ୍ମ ।।୫୬।।
ଜନ୍ମ ହେବା ମାତ୍ରେ କାନ୍ଦନ୍ତି
କାନ୍ଦି ସାରା ଜୀବନ
ଶେଷ ବେଳେ, ସର୍ବେ କାନ୍ଦନ୍ତି
ପ୍ରିୟ ଓ ପରିଜନ ।।୫୭।।
ଆନନ୍ଦ ଧାମରେ ଅନନ୍ଦେ
ଥାଏ ପରମାନନ୍ଦ,
ସୃଷ୍ଟି କର୍ତ୍ତା ହୋଇ ଦେଖେ ସେ
ସଦା ସଂତାନ କାନ୍ଦ ।।୫୮।।
ସୃଷ୍ଟି କରି ନିଜ ସନ୍ତାନେ
ସେତ କନ୍ଦାଇ ଥାଏ
କେଜାଣି କିଅବା ସେଥିରୁ
ସେକି ଆନନ୍ଦ ପାଏ ।।୫୯।।
ଧିକ ତାର ବୁଦ୍ଧି ବିବେକ
ଧିକ ତା ବଡ଼ପଣ
ନିଜେ ହସି ସଦା କନ୍ଦାଏ
ନିଜ ସନ୍ତାନ ଗଣ ।।୬୦।।

କାନ୍ଦୁଛି ମୁଁ ଆଜି କାନ୍ଦିବି
ସାରା ଜୀବନ ମୋର
ଖୁସି ସିଏ ଯଦି ହେବ ମୋ
ଦେଖି ନୟନେ ନୀର ।।୬୧।।
କାନ୍ଦି କାନ୍ଦି ଶୁଖି ଗଲାଣି
ଆଉ ନାହିଁ ଲୋତକ
କେତେ ଦିନ ଆଉ କାନ୍ଦିବି
ଗଲା ଜୀବନ ଯାକ ।।୬୨।।
ଶେଷ ଜୀବନରେ କରିବି
ରଘୁନାଥ ଦର୍ଶନ
ଜନ୍ମସ୍ଥାନ ଛାଡ଼ି କଲି ମୁଁ
ବାସ ଶ୍ରୀରାମ ଧାମ ।।୬୩।।
ନାହିଁ ମୋର ପୁଣ୍ୟ, ପାପୀ ମୁଁ
ନାହିଁ ସେ ଭାଗ୍ୟ ମୋର
ରୌରବ ନରକେ ପଡ଼ିମୁଁ
ଦୁଃଖ ଭୋଗୁଛି ଘୋର ।।୬୪।।
ନିର୍ଜନ ଦ୍ୱୀପରେ ଏକାକୀ
ନିର୍ବାସିତ ପରାଏ
ବିଳାପ କରିମୁଁ ଦିବସ
ନିଶି ଦୁଃଖେ ବିତାଏ ।।୬୫।।
ଛାଡ଼ି ଚାଲିଗଲା ଜୀବନ-
ସାଥୀ କରି ଏକାକୀ
ତା ପାଶେ ଯିବାକୁ ଗଣୁଛି
ଦିନ ରହିଛି ଟାକି ।।୬୬।।

କେତେ ଆଶାଥିଲା ଆନନ୍ଦେ
ହୁହେଁ ଶେଷ ଜୀବନ
କଟାଇବୁ ଓଡ଼ଗ୍ରାମରେ
କରି ରାମ ଦର୍ଶନ ।।୬୭।।
ରହିଗଲା ଆଶା, ଆଶାରେ
ଇଚ୍ଛା ପ୍ରଭୁଙ୍କ ନାହିଁ
ମହାପାପୀ ପ୍ରଭୁଦର୍ଶନ
ସଦା ପାଇବି କାହିଁ ? ।।୬୮।।
କୁମ୍ଭକାର ଯଥା ଶ୍ରୀକ୍ଷେତ୍ରେ
ଦିଏ ହାଣ୍ଡି ଦୈନିକ
ଦର୍ଶନ କରିବି ପ୍ରଭୁଙ୍କୁ
ଭାବେ ଯାଉ ଆଜିକ ।।୬୯।।
ଏହିପରି ଭାବି, ଭାବିତା'
ଦିନ ହୁଏ ଅତୀତ
କାହୁଁସେ ପାଇବ ଦର୍ଶନ
ତାର ଭାଗ୍ୟେ ନାହିଁତ ।।୭୦।।
ଭାଲ ପଟେ ବିଧି ଲିଖନ
ଆନ କରିବ କିଏ
ଯାହା କର୍ମଫଳ ନିଶ୍ଚୟ
ଭୋଗ କରିବ ସିଏ ।।୭୧।।
ଧର୍ମ କର୍ମ କିଛି କରିନି
ଧନ ପଛେ ଗୋଡ଼ାଇ
ସାଧୁ ସନ୍ଥ ସଙ୍ଗ କରିନି
ମାୟା ଜଂଜାଳେ ରହି ।।୭୨।।

ଦେବ ଆରାଧନା ଦୈନିକ
ଭକ୍ତି ଭାବରେ କରି
କ୍ଷୁଧାର୍ତ୍ତକୁ ଅନ୍ନ ତୃଷାର୍ତ୍ତେ
ଜଳ ଦାନ ସେ କରି ।।୭୩।।
ପୂଣ୍ୟବତୀ ହୋଇ ମୋ ଆଗେ
ଗଲା ସ୍ୱର୍ଗକୁ ଚଳି
ମୁଁ ପାପୀ କାନ୍ଦୁଛି ଦିବସ
ନିଶି ଦୁଃଖରେ ଭାଳି ।।୭୪।।
ବହୁ ଦୁଃଖ କଷ୍ଟ ଲେଖୁଛି
ବିହି ଭାଗ୍ୟରେ ମୋର
ନିଃସଙ୍ଗ ଜୀବନ ବିତାଏ
ଢ଼ାଳି ନୟନୁ ନୀର ।।୭୫।।
ଜଗତର ଯେତେ ଯନ୍ତ୍ରଣା
ଦୁଃଖ, ବ୍ୟଥା, ବେଦନା
ଢ଼ାଳିଦିଅ ସବୁ ମୋ ଶିରେ
ଦିଅ ନର୍କ ଯାତନା ।।୭୬।।
ସେ ପାଇଁ ନାହିଁ ମୋ ଶୋଚନା
ଦିଅ ବିବେକ ବୁଦ୍ଧି
ବିଶ୍ୱଜନ ହିତେ ଲେଖିବି
କବିତା ନିରବଧି ।।୭୭।।
ଅନ୍ୟାୟ, ଅନୀତି, ଦୁର୍ନୀତି
ଭ୍ରଷ୍ଟାଚାର ବିରୁଦ୍ଧେ
କରିବି ସଂଗ୍ରାମ ସର୍ବଦା
ମୋ ଲେଖନୀ ଆୟୁଧେ ।।୭୮।।

ଦୁଃଖ ଯନ୍ତ୍ରଣାରେ ସହିବି
ପଛେ ଦିବସ ନିଶି
ଜଗତର ହିତେ ଗଳିବି
ଅବିଶ୍ରାନ୍ତ ମୋ ମସୀ ।।୭୯।।
କବି "ଦୀନକୃଷ୍ଣ" ଲେଖିଲେ
କାବ୍ୟ "ରସକଲ୍ଲୋଳ"
ସରସ୍ୱତୀ ବରପୁତ୍ର ସେ
ହେଲେ "କବି କଲ୍ଲୋଳ" ।।୮୦।।
ଲେଖିଛନ୍ତି ଯଥା "ଉପେନ୍ଦ୍ର
ଭଞ୍ଜ" କବିସମ୍ରାଟ
ଓଡ଼ିଶାର ଗର୍ବ ଗୌରବ
କବି ମାନଙ୍କ ଶ୍ରେଷ୍ଠ ।।୮୧।।
"କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" ଓ
"ବୈଦେହୀଶ ବିଳାସ"
ଆବର "ଲାବଣ୍ୟ ବତୀ" ଯେ
ସାରସ୍ୱତ ସୁରସ ।।୮୨।।
"ପ୍ରେମ ତରଙ୍ଗିଣୀ ରଚିଲେ"
"ମୋହନ କଳ୍ପଲତା"
"ନିଷ୍ଠା ନୀଳମଣି" ଆଦି ଯେ
ରାଧାକୃଷ୍ଣଙ୍କ ଗାଥା ।।୮୩।।
"ଲଳିତ ଲୋଚନା" ଯୁଗଳ
ରସାମୃତ ଲହରୀ
ରଚି "ସଦାନନ୍ଦ ବ୍ରହ୍ମା" ଯେ
କବି, ସୂର୍ଯ୍ୟଙ୍କ ସରି ।।୮୪।।

"ବିଚିତ୍ର ରାମାୟଣ" ରଚି
"ବିଶ୍ୱନାଥ ଖୁଣ୍ଟିଆ"
କରିଛନ୍ତି ପ୍ରତିପାଦନ
ଶ୍ରେଷ୍ଠ କବି ପଣିଆ ॥୮୪॥

"ସମର ତରଙ୍ଗ" ରଚିଲେ
"ଶ୍ୟାମ ରାସ" ଉତ୍ସବ
"ବ୍ରଜନାଥ ବଡ଼ଜେନା" ଙ୍କ
ଶୈଳୀ ଦେବ ଦୁର୍ଲ୍ଲଭ ॥୮୬॥

ରଚିଲେ "ମଥୁରା ମଙ୍ଗଳ"
କବି "ଭକ୍ତ ଚରଣ"
"ମନ ବୋଧ ଚଉତିଶା" ଯେ
କରେ ମନ ହରଣ ॥୮୭॥

"ବିଦଗ୍ଧ ଚିନ୍ତାମଣୀ" ଲେଖି
"ଅଭିମନ୍ୟୁ ସାମନ୍ତ"
ବୋଲାଇଲେ "ବିଦଗ୍ଧ କବି"
କବି କୁଳ ବନ୍ଦିତ ॥୮୮॥

"ଯଦୁମଣୀ ମହାପାତ୍ର" ଯେ
ନୟାଗଡ଼ ରାଜ୍ୟର
ହାସ୍ୟ ରସ ରାଜ କବି ସେ
ଥିଲେ ମହା ଚତୁର ॥୮୯॥

ମୁହେଁ ମୁହେଁ ତାଙ୍କ କବିତା
ହେଉଥିଲା ରଚନା
"ଉତ୍କଳଘଣ୍ଟ" ଉପାଧିରେ
ଭୂଷିତ ମହାମନା ॥୯୦॥

"ରାଘବ ବିଳାସ" ସୁରସ
"ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର"
ରଚି ହୋଇଛନ୍ତି ପୂଜ୍ୟସେ
ଯଥା ପୂର୍ଣ୍ଣିମା ଚନ୍ଦ୍ର ।।୯୧।।
"କିଶୋର ଚନ୍ଦ୍ରାନନ ଚମ୍ପୁ"
"ଚନ୍ଦ୍ରକଳା" ଲେଖିଲେ
"ବଳଦେବ ରଥ" ଉକ୍ତଳେ
"କବି ସୂର୍ଯ୍ୟ" ହୋଇଲେ ।।୯୨।।
ବାଉଁଶ ନଳୀରେ ଗଣନା
କରି ଗ୍ରହ ନକ୍ଷତ୍ର
"ସିଦ୍ଧାନ୍ତ ଦର୍ପଣ" ଲେଖିଲେ
ସେ "ପଠାଣୀ ସାମନ୍ତ" ।।୯୩।।
ସ୍ଥିର ରହି ଅଛି ପୃଥିବୀ
ଚନ୍ଦ୍ର, ସୂର୍ଯ୍ୟ, ତାରକା
ଗତି କରୁଛନ୍ତି ପ୍ରମାଣ
କରିଛନ୍ତି ସେ ଏକା ।।୯୪।।
ଜ୍ୟୋତିଷ ଶାସ୍ତ୍ରରେ ପାଣ୍ଡିତ୍ୟ
ଥିଲା ଅଗାଧ ଜ୍ଞାନ
ମହାମହୋପାଧ୍ୟାୟ ପଦ
ପାଇ ହେଲେ ମହାନ ।।୯୫।।
ଅନ୍ଧ "ଭୀମ ଭୋଇ" ଲେଖିଲେ
ଦୁଃଖ ପ୍ରାଣୀଙ୍କ ଦେଖି
ନର୍କେ ପଡୁ ପଛେ ଜୀବନ
ଜଗତ ହେଉ ସୁଖି ।।୯୬।।

"ଚିଲିକା" "ଯଯାତି କେଶରୀ"
ଲେଖି "କେଦାର ଗୌରୀ"
ମହାଯାତ୍ରା, ଚନ୍ଦ୍ରଭାଗା ଓ
ଦରବାର ସେ ଭରି ॥୯୭॥

କବିବର "ରାଧାନାଥ" ଯେ
ସାରସ୍ୱତ ଭଣ୍ଡାର
ପରିପୂର୍ଣ୍ଣ କଲେ ଓଡ଼ିଆ
କାବ୍ୟର ଗନ୍ତାଘର ॥୯୮॥

ଭକ୍ତକବି "ମଧୁସୁଦନ"
ଲେଖିଲେ "ପୁଷ୍ପାଞ୍ଜଳୀ"
ଭକ୍ତିରସେ ପରିପୂର୍ଣ୍ଣ ସେ
ଭକତ ଗଳାମାଳୀ ॥୯୯॥

ଲେଖିଥିଲେ ଯଥା "ଫକିର
ମୋହନ" ବ୍ୟାସ କବି
"ଗଙ୍ଗାଧର" "ବଳଦେବ" ଯେ
କବି ମଧ୍ୟରେ ରବି ॥୧୦୦॥

ଛମାଣ, ଆଠଗୁଣ୍ଠ, ମାମୁଁ
ଲଛମା, ପ୍ରାୟଶ୍ଚିତ,
ରଚି "ବ୍ୟାସ କବି" ହୋଇଲେ
ଉପନ୍ୟାସ ସମ୍ରାଟ ॥୧୦୧॥

"ପ୍ରଣୟ ବଲ୍ଲରୀ" ଲେଖିଲେ
"ଗଙ୍ଗାଧର ମେହେର"
"ତପସ୍ୱିନୀ" "ଇନ୍ଦୁମତୀ" ଯେ
ପ୍ରକୃତି ଚିତ୍ରକର ॥୧୦୨॥

"ଅଯୋଧ୍ୟାର ଦୃଶ୍ୟ" "ଉତ୍କଳ-
ଲକ୍ଷ୍ମୀ" "କୀଚକ ବଧ"
ଲେଖି ବୋଲାଇଲେ ଉତ୍କଳେ
ଜ୍ଞାନୀ ଗୁଣୀ ବିବୁଧ ॥୧୦୩॥
ପଲ୍ଲୀ କବି "ନନ୍ଦ କିଶୋର"
ରଚି "ଶର୍ମିଷ୍ଠା" କାବ୍ୟ
ରଖିଗଲେ ଯଶ ଉତ୍କଳେ
ହୋଇ ମହାନୁଭବ ॥୧୦୪॥
ଦରିଦ୍ରର ବନ୍ଧୁ ଥିଲେ ସେ
"ଗୋପବନ୍ଧୁ" ଉତ୍କଳେ
"ଅବକାଶ ଚିନ୍ତା" "ବନ୍ଦୀର-
ଆତ୍ମ କଥା" ର ଛଳେ ॥୧୦୫॥
ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା
ଲେଖି କଲମ ମୂନେ
ଥରାଇ ଦେଲେ ସେ
ବ୍ରିଟିସ ସରକାର ଶାସନେ ॥୧୦୬॥
"ନୀଳକଣ୍ଠ ଦାସ" ରଚିଲେ
"କୋଣାର୍କେ" କାବ୍ୟ ସାର
"ଖାରବେଳ", "ପ୍ରଣୟିନୀ" ଯେ
"ମୋର ନିଶ" ଆବର ॥୧୦୭॥
"ଆର୍ଦ୍ଧ ଶତାବ୍ଦିର ଓଡ଼ିଶା
ତହିଁରେ ମୋର ସ୍ଥାନ"
ଲେଖି "ଗୋଦାବରୀଶ ମିଶ୍ର"
ହୋଇଗଲେ ମହାନ ॥୧୦୮॥

ଝୁରୁଛି ଜଟିଆ ଭାଲେରୀ
ଝୁରେ ସେ "କାଳିଜାଇ"
ପାରିକୁଦ ଗଡ଼ କାହାଣୀ
ଜନ ମାନସେ ରହି ॥୧୦୯॥
"ମହାପାତ୍ର ଗୋଦାବରୀଶ"
ଲେଖି କଣ୍ଟା ଓ ଫୁଲ
"ସଂପାଦକ" "ନିଆଁ ଖୁଣ୍ଟା" ର
ଯାର ମୂଲ୍ୟ ଦୁର୍ମୂଲ୍ୟ ॥୧୧୦॥
ଧନ୍ୟ ହେ "କାଳନ୍ଦୀ ଚରଣ"
ଧନ୍ୟ ତୁମର ସୃଷ୍ଟି
ମାନବ ଚରିତ୍ର ଚିତ୍ରଣେ
ଦେଇଛ ଦିବ୍ୟ ଦୃଷ୍ଟି ॥୧୧୧॥
"ମାଟିର ମଣିଷ", "ମଂସର
ବିଳାପ" ଯେ ଲେଖିଲ
"ମୁକ୍ତା ଗଡ଼ର କ୍ଷୁଧା" ଯେ
ଲେଖି ଧନ୍ୟ ହୋଇଲ ॥୧୧୨॥
"ମାୟାଧର ମାନସିଂହ" ଯେ
ସିଂହ ସମାନ କବି
"ହେମ ଶସ୍ୟ. "ସାଧବ ଝିଅ"
ସାହିତ୍ୟ ଯଜ୍ଞେ ହବି ॥୧୧୩॥
"କୌଶୋରୀକା", "ଅସମାପିକା"
"ପଶୁ ପକ୍ଷୀର କାବ୍ୟ"
ରଚି "କବି ରାଧା ମୋହନ"
ଗଡ଼ନାୟକ ଦିବ୍ୟ ॥୧୧୪॥

"ସଚ୍ଚି ରାଉତରାୟ" ତୁମେ
ଓଡ଼ିଆ ସାହିତ୍ୟରେ
ବନ୍ଦନୀୟ ହୋଇ ରହିବ
ଶ୍ରେଷ୍ଠ କବି ଭାବରେ ॥୧୧୫॥

"ବାଜି ରାଉତ" ଓ କବିତା
"ଛୋଟ ମୋର ଗାଁ ଟି"
ଚିରକାଳ ଥିବ ଜାଜ୍ୱଲ୍ୟମାନ
ତୁମ ନାଆଁଟି ॥୧୧୬॥

"ମାଟିମଟାଳ" ଓ "ପରଜା"
"ଅମୃତର ସନ୍ତାନ"
ଲେଖ "ଗୋପିନାଥ ମହାନ୍ତି"
ପାଇଛନ୍ତି ସୁନାମ ॥୧୧୭॥

"ହା ଅନ୍ନ", "କା" "ତୁଣ୍ଡ ବାଇଦ"
"କାହ୍ନୁଚରଣ" ଲେଖ
ସାହିତ୍ୟ ଆକାଶେ ଉଡ଼ିଲେ
ଯଥା ସୁଦୂରେ ପକ୍ଷୀ ॥୧୧୮॥

"ସୁରେନ୍ଦ୍ର ମହାନ୍ତି" ନାହାନ୍ତି
ଭାବି ହୁଏ ନା ମନେ
ଭୁଲିବେନି କେବେ ପାଠକେ
ଯିଏ ପଢ଼ିବେ ଦିନେ ॥୧୧୯॥

"ନୀଳ ଶୈଳ", ଅନ୍ଧ ଦିଗନ୍ତ
ଲେଖି "ଶତାବ୍ଦୀ ସୂର୍ଯ୍ୟ"
ଉତ୍କଳ ସାହିତ୍ୟ ଆକାଶେ
ସେଯେ ଜ୍ୱଳନ୍ତ ସୂର୍ଯ୍ୟ ॥୧୨୦॥

"ପଥ ପ୍ରାନ୍ତରର କବିତା"
"ରବିସିଂହ" ରଚିଲେ
"ଲାଲ ପାଗୋଡାର ମୃତ୍ୟୁ "ରେ
ପ୍ରାଣେ ବ୍ୟଥିତ ହେଲେ ।।୧୨୧।।
ଶାସନର ବିଶୃଙ୍ଖଳାରେ ହୋଇ
ବିଦ୍ରୋହୀ ମନେ
ଭ୍ରଷ୍ଟାଚାର ବିରୁଦ୍ଧରେ ସେ
ଲେଖି କଲମ ମୁନେ ।।୧୨୨।।
ବୈପ୍ଳବିକ ଚିନ୍ତାଧାରାରେ
ରଚି କବିତା ମାନ
"ବିପ୍ଳବୀ କବି" ଭାବରେ ସେ
ପାଇଛନ୍ତି ସମ୍ମାନ ।।୧୨୩।।
"କୁନ୍ତଳା କୁମାରୀ ସାବତ"
ଆଉ "ପ୍ରତିଭା ରାୟ"
"ବିଦ୍ୟୁତ୍ ପ୍ରଭା ଦେବୀ" ରଚିଲେ
ବହୁ ଗ୍ରନ୍ଥ ନିଚୟ ।।୧୨୪।।
କେତେ ଯେ ଲେଖକ ଲେଖିକା
ସୃଜି ଶ୍ରେଷ୍ଠ ସାହିତ୍ୟ
ରହିଛନ୍ତି ହୋଇ ନମସ୍ୟ
ଦେଶବାସୀ ଅଗ୍ରତ ।।୧୨୫।।
କେତେ ମୁଁ ବର୍ଣ୍ଣିବି ଉତ୍କଳ
କବି କାବ୍ୟ ଚାତୁରୀ
ସରସ୍ୱତୀ ବରପୁତ୍ର ଯେ
ଏକୁ ଆରେକ ବଳୀ ।।୧୨୬।।

ବିଷ୍ଣୁଅଂଶୀ କବି ଲେଖକ
ଦିଅ ଆଶୀଷ ଢ଼ାଳି
ତବ କୃପାବଳେ ଲେଖିବି
କାବ୍ୟ କବିତାଞ୍ଜଳୀ ॥୧୨୭॥
ଆଶୀର୍ବାଦ ଦିଅ ବରଷି
ଲେଖି କାବ୍ୟ କବିତା
ବିତିଯାଉ ଶେଷ ଜୀବନ
ପ୍ରାଣ୍ଣୁ ବରଜି ଚିନ୍ତା ॥୧୨୮॥
ସୂର୍ଯ୍ୟ, ଚନ୍ଦ୍ର, ତୁମେ ହୋଇଲେ
ମୁଁ ତ ଖଦ୍ୟୋତ ଟିଏ
ମଣେନା କବି ମୁଁ ନିଜକୁ
ଲେଖି ମୁଁ ଚାଲିଥାଏ ॥୧୨୯॥
ମାତ୍ର କିଛି ବ୍ୟକ୍ତି ଅଛନ୍ତି
ମନେ ମନେ ନିଜକୁ
ମହାନ ଲେଖକ ଭାବନ୍ତି
ଘୃଣା ମୋ ସେମାନଙ୍କୁ ॥୧୩୦॥
ସାହିତ୍ୟ ନାମରେ ଶୋଷଣ
କରି ଦୁଃସ୍ଥ କବିଙ୍କୁ
ବ୍ୟବସାୟ ରୂପେ ଗ୍ରହଣ
କରନ୍ତି ସାହିତ୍ୟକୁ ॥୧୩୧॥
ସମ୍ବର୍ଦ୍ଧନା ଦେବା ନାଁ ରେ
ଅର୍ଥ ଶୋଷଣ କରି
କବି ସମାବେଶ କରନ୍ତି
ମାନ ପତ୍ର ବିତରି ॥୧୩୨॥

ଲେଖକ ଲେଖିକା ଭାଇଙ୍କୁ
ମୋର ସଦା ଜୁହାର
ସାହିତ୍ୟ ନାମରେ ଠକଙ୍କୁ
କରନ୍ତୁ ପରିହାର ।।୧୩୩।।
ଘୋର କଳିକାଳ ଯୁଗ ଏ
ହୋଇଛି ଉପସ୍ଥିତ
ଅନ୍ୟାୟ ଅନୀତି, ଦୁର୍ନୀତି
ପଥେ ସର୍ବେ ଧାବିତ ।।୧୩୪।।
ବସ୍ତୁବାଦୀ ଆଜି ହୋଇଛି
ଲୋକ ଚରିତ୍ର ଦେଶେ
ଯେ ଯେତେ ପାରୁଛି କରୁଛି
ଅତ୍ୟାଚାର ନିମିଷେ ।।୧୩୫।।
ଯେତେ ବଡ଼ ବ୍ୟକ୍ତି-ବିଶେଷ
ସେତେ ବେଶୀ ଅନ୍ୟାୟ
କରୁଛନ୍ତି ହୃଦେ ନ ରଖି
ଧର୍ମା ଧର୍ମର ଭୟ ।।୧୩୬।।
ଯିଏ ଯେତେ ଏଠି ପାରୁଛି
ସେତେ ମାରୁଛି ଅର୍ଥ
ଅର୍ଥ ପାଇଁ ଆଜି ସମାଜେ
ହୁଏ ସବୁ ଅନର୍ଥ ।।୧୩୭।।
ଜ୍ୟେଷ୍ଠ କନିଷ୍ଠର ଭାବନା
ନାହିଁ ହୃଦେ କାହାରି
ମାନ୍ୟ ଭକ୍ତି ଗୁରୁଜନଙ୍କୁ
ସବୁ ଗଲେ ବିସ୍ମରି ।।୧୩୮।।

ସବୁ ମୁଁ ଜାଣିଛି ଭାବନ୍ତି
ସର୍ବେ ଗର୍ବରେ ଅନ୍ଧ
ଜ୍ଞାନୀ, ଗୁଣୀ, ପୂଜ୍ୟ ପୂଜାର
ନାହିଁ ବାସନା ଗନ୍ଧ ॥୧୩୯॥

ଅଜ୍ଞାନ ପାଆନ୍ତି ସମ୍ମାନ
ଅର୍ଥ ବଳେ ସମାଜେ
ଜ୍ଞାନୀ ହୁଏ ଅବହେଳିତ
ରହେ ନୀରବ ଲାଜେ ॥୧୪୦॥

ଧରା ଧରି ମରା ମରି ଯେ
ଡ଼ରାଡ଼ରି ଚାଲିଛି
ଚରା ଚର ବିଶ୍ୱ ନିୟନ୍ତା
ବରାବର ଦେଖୁଛି ॥୧୪୧॥

ମାରୁଛି କିଏ ସେ ମରୁଛି-
କିଏ ଜାଣୁଛି ସିଏ
ପାରୁଛି କିଏ ସେ ହାରୁଛି-
କିଏ ଗଣୁଛି ସିଏ ॥୧୪୨॥

ଅଧିକ ଅନ୍ଧାର ହୋଇଲେ
ଦିଶେ ଆକାଶେ ତାରା
କେତେ ଦିନ ଆଉ ସହିବ
ପାପ ଅଧର୍ମ ଧରା ॥୧୪୩॥

ଜାଗିବେ ନିଶ୍ଚୟ ଜନତା
ନାହିଁ ସନ୍ଦେହ ତିଳେ
ପାପୀ ହେବେ ସବୁ ବିନାଶ
ପାପ ଅଧିକ ଫଳେ ॥୧୪୪॥

ସତପଥ ଗାମୀ ଧାର୍ମିକ
ସବୁ ହୋଇବେ ଠୁଳ
କରିବେ ସଂଗ୍ରାମ ପୋଛିବେ
ଦେଶୁ ଅନ୍ୟାୟ ମୂଳ ॥୧୪୫॥
ଜୀବନ ନଉକା ଭାସୁଛି
ମୋର ଆହୁଲା ବିନା
ହୃଦୟର ଢ଼େଉ ଉଛୁଳେ
ଭୋଗେ ଦୁଃଖ ଯାତନା ॥୧୪୬॥
ଭୁଲିବାକୁ ବ୍ୟଥା ବେଦନା
ଲେଖେ କବିତା ବସି
ବ୍ୟଥିତ ଅନ୍ତରେ ଲେଖନୀ
ଚାଲେ ଦିବସନିଶି ॥୧୪୭॥
ଲେଖନୀ ନିସୃତ ଯେତେ ମୋ
ଦୁଃଖ, ବ୍ୟଥା, ବେଦନା
କବିତାକୁ ସଦା କହୁଛି
କାଳେ ଦେବ ଶାନ୍ତ୍ୱନା ॥୧୪୮॥
ପରାଭୂତ ସୁଖ ଓ ଶାନ୍ତି
ଶେଷ ଜୀବନେ ମୋର
ଭୋଗିବାକୁ ବଂଚି ରହିଛି
ପୂର୍ବ ଜନ୍ମର ଫଳ ॥୧୪୯॥
ଭାଲ ପଟେ ବିଧି ଲିଖନ
କିଏ କରିବ ଆନ
କର୍ମ ଅନୁସାରେ ବିଧାତା
କରେ ଫଳ ନିଦାନ ॥୧୫୦॥

ଭଙ୍ଗାଘର ଭଙ୍ଗାମନ ମୋ
ଭଙ୍ଗା ହୃଦୟ ନେଇ
କାମନା ବାସନା କିଛି ମୋ
ଆଉ ଜୀବନେ ନାହିଁ ।।୧୫୧।।

ଉଡ଼ିଯାଉ ପ୍ରାଣ ପକ୍ଷୀ ମୋ
ଯେଉଁ ସ୍ଥାନରେ ନିତି
ଦୁଃଖ ଶୋକ ବିନା ମିଳିବ
ସଦା ସ୍ୱର୍ଗୀୟ ଶାନ୍ତି ।।୧୫୨।।

କେତେ ପାପୀ ପ୍ରଭୁ ତାରିଛ
ଅଛି ପୁରାଣେ ଲେଖା
ମୁଁ ପାପୀ ଡ଼ାକୁଛି କାତରେ
ଦିଅବାରେକଦେଖା ।।୧୫୩।।

ବିପଦେ ଡ଼ାକିଲା ମୃଗୁଣୀ
ତାକୁ ଉଦ୍ଧାର କଲ
ଗଜ ଡ଼ାକ ଦେଲା ଜଳରେ
କୁମ୍ଭୀରକୁ ନାଶିଲ ।।୧୫୪।।

ଦୁଃଶାସନ କଲା ଉଲଗ୍ନ
ସଭାସ୍ଥଳେ ପାଞ୍ଚାଳୀ
ମାନରକ୍ଷା କଲ ଯୋଗାଇ
କୋଟି ବସ୍ତ୍ର ଶ୍ରୀହରି ।।୧୫୫।।

ମହାପାପୀ ଅଜାମିଳ ସେ
ପୁତ୍ର ନାମକୁ ଧରି
"ନାରାୟଣ" ବୋଲି ଡ଼ାକିଲା
ଶେଷ କାଳେ ତାହାରି ।।୧୫୬।।

ତାରିଛ ତା ଭଳି ପାପୀକୁ
ସ୍ଥାନ ବୈକୁଣ୍ଠେ ଦେଇ
ଗଉତମ ଶାପେ ଅହଲ୍ୟା
ଥିଲା ପାଷାଣୀ ହୋଇ ।।୧୫୭।।
ପାଦ ସ୍ପର୍ଶେ ହେଲା ପବିତ୍ର
ଗଲା ସରଗ ଧାମ
ରତ୍ନାକର ହେଲେ ବାଲ୍ମୀକି
ଜପି ତୁମରି ନାମ ।।୧୫୮।।
ପିତା ସତ୍ୟେ ବନେ ଗମିଲ
ଚିତ୍ରକୁଟ ବନରେ
ପ୍ରବେଶିଲ ଅତ୍ରୀ ମୁନୀଙ୍କ
ପବିତ୍ର ଆଶ୍ରମରେ ।।୧୫୯।।
ବନବାସେ ରୂପ ମାଧୁରୀ
ବନ ମଧ୍ୟେ ନିରେଖି
କମନୀୟ ଶାନ୍ତ ସୁନ୍ଦର
ମୂର୍ତ୍ତି ଆଶ୍ରମେ ଦେଖି ।।୧୬୦।।
ଯୋଗ ବଳେ ଜାଣି ସାକ୍ଷାତ
ବିଷ୍ଣୁଙ୍କ ଅବତାର
ଭକ୍ତିରେ ଆତିଥ୍ୟ ପ୍ରଦାନି
କରି, ନାନା ସତ୍‌କାର ।।୧୬୧।।
ଅତ୍ରୀ ମୁନି କଲେ କାମନା
ସଦା ତାଙ୍କ ଆଶ୍ରମେ
ରହିଲେ ଦର୍ଶନ କରନ୍ତେ
ସୀତା, ରାମ, ଲକ୍ଷ୍ମଣେ ।।୧୬୨।।

"କଳିଯୁଗେ ମନ କାମନା"
ତୁମ ହେବ ପୁରଣ
କହିଥିଲେ ମୁନୀବରଙ୍କୁ
ତ୍ରେତା ଯୁଗେ ଶ୍ରୀରାମ ।।୧୬୩।।

ସେହି ଦିନୁ ତିନି ମୂରତି
ଶାଳ ଗ୍ରାମ ଆଶ୍ରମେ
ପୂଜାକଲେ ମୂନୀ, ସୀତା ଓ
ରାମ, ଲକ୍ଷ୍ମଣ ନାମେ ।।୧୬୪।।

କାଳକ୍ରମେ ଅତ୍ରୀମୁନୀ ଙ୍କ
ପରେ ସେହି ସ୍ଥାନରେ
ମୂନୀ, ଋଷି, ସାଧୁ, ସନ୍ଥ ଙ୍କ
ପରମ୍ପରା କ୍ରମରେ ।।୧୬୫।।

ପୂଜା ହୋଇ ଆସୁ ଅଛନ୍ତି
ତିନି ସେ ଶାଳଗ୍ରାମ
ପବିତ୍ର ପୀଠ ଏ "ଓଡ଼ଗାଁ"
ଅଟେ "ଅତ୍ରୀ ଆଶ୍ରମ" ।।୧୬୬।।

ଥିଲେ ନୟାଗଡ଼େ ଭକତ
ଶ୍ରେଷ୍ଠ ଜ୍ଞାନୀ ପରମ
ବଇରାଗୀ ପଟ୍ଟନାୟକ
ନାମେ ରାଜ ଦେଓ୍ୱାନ ।।୧୬୭।।

ସପନରେ ରାମ ଲକ୍ଷ୍ମଣ
ସୀତା ମୂରତି ଦେଖି
ବଗିଚ୍ଚରେ ଥିବା ତିନୋଟି
ନିମ୍ବଦାରୁକୁ କାଟି ।।୧୬୮।।

ଗଢ଼ାଇଲେ ତିନି ମୂରତି
ସୀତା, ରାମ, ଲକ୍ଷ୍ମଣ
ସ୍ୱପ୍ନରେ ଯେ ରୂପେ ପୂର୍ବରୁ
କରିଥିଲେ ଦର୍ଶନ ॥୧୬୯॥

ବନବାସ ବେଶେ ମୂରତି
ଗଢ଼ି ଭକ୍ତ ପ୍ରବର
ଭକ୍ତି ଭରେ ପ୍ରାଣ ପ୍ରତିଷ୍ଠା
କରି ନିଜ ମନ୍ଦିର ॥୧୭୦॥

ପୂଜା ଆରାଧନା କରନ୍ତେ
ପ୍ରଭୁ ସ୍ୱପ୍ନରେ ଦିନେ
କହିଲେ ସ୍ଥାପନା କରହେ
ମୋତେ "ଅତ୍ରୀ ଆଶ୍ରମେ" ॥୧୭୧॥

ସ୍ୱପ୍ନାଦେଶ ହେଲା ରାଜାଙ୍କୁ
ପୁଣି ଏକ ଦିନରେ
ତୋଳିଲେ ସୁନ୍ଦର ମନ୍ଦିର
ଏକ ଅତ୍ରୀ ଧାମରେ ॥୧୭୨॥

"ରଘୁନାଥ" ନାମେ ପାଉଛ
ପୂଜା ଓଡ଼ଗ୍ରାମରେ
ବିଖ୍ୟାତ ହୋଇଛି ମହିମା
ତୁମ ବିଶ୍ୱଜନରେ ॥୧୭୩॥

ସୁବର୍ଣ୍ଣ କଳସ ଖଚିତ
ତୁମ ମନ୍ଦିରେ ନିତି
ଶହ ଶହ ଭକ୍ତ ଦର୍ଶନ
କରି ଦୁଃଖ ଜଣାନ୍ତି ॥୧୭୪॥

ଗହ ଗହ ଘଣ୍ଟ କାହାଳୀ
ନାଦେ କମ୍ପଇ କାନ
ମହ ମହ ବାସେ କର୍ପୁର
ଧୂପଦୀପ ଚନ୍ଦନ ॥୧୭୪॥
ରହ ରହ ପଣ୍ଡା ଡାକନ୍ତି
ଭକ୍ତ ନଯାଅ ଚାଲି
କହ କହ ତୁମ ମନର
କଥା ପ୍ରଭୁଙ୍କୁ ଖୋଲି ॥୧୭୬॥
ନିଅ ନିଅ ଛଡା ତୁଳସୀ
ଆଉ ଚରଣୋଦକ
ଦିଅ ଦିଅ କିଛି ଦକ୍ଷିଣା
ପୁରିବ ମାନସିକ ॥୧୭୭॥
ଗହଳ ଚହଳ ଲାଗିଛି
ତୁମ ମନ୍ଦିରେ ସଦା
ସହଳ ସହଳ ଲାଗୁଛି
ଭୋଗ ସକାଳୁ ସଂଧ୍ୟା ॥୧୭୮॥
ତୁମ ଦୀପ ଜଳେ ଘିଅରେ,
ମୋର ଜଳେ ଲୁହରେ
ତୁମ ଧୂପ ଖୀରି ଖେଚେଡ଼ି
ଉପବାସେ ମୁଁ ମରେ ॥୧୭୯॥
ମରୁଛି ଦିବସ ରଜନୀ
କାନ୍ଦି କାନ୍ଦି ଏକାକୀ
ଝରୁଛି ସର୍ବଦା ଲୋତକ
ନେତ୍ର ନଯାଏ ଶୁଖି ॥୧୮୦॥

ହରାଇ ସୀତାଙ୍କୁ କାନ୍ଦିଛ
ପଞ୍ଚବଟୀ ବନରେ
ଝରାଇ ସେପରି ନୀର ମୁଁ
କାନ୍ଦେ ନିରିଜନରେ ॥୧୮୧॥
ତୁମ ଶ୍ରୀ ଚରଣ ଦର୍ଶନ
ଆଶେ ରହିଛି ପଡ଼ି
ତୁଳସୀ ପାଦୁକ ଆଶାମୁଁ
ପ୍ରଭୁ ପାରୁନି ଛାଡି ॥୧୮୨॥
ଗୃହେଁନା ଜୀବନେ ମୁକତି
ପ୍ରଭୁ ଦିଅ ଜନମ
ଜନ୍ମେ ଜନ୍ମେ ଦୁଃଖ ଭୋଗିବି
ପଛେ ଜପିବି ନାମ ॥୧୮୩॥
ଶରଣ ନଦେଲେ ଚରଣେ
ଶୀଘ୍ର ଦିଅ ମରଣ
ଭରଣ ପୋଷଣ କରିଣ
ବଞ୍ଚିବିକି କାରଣ ॥୧୮୪॥
ବଂଚିବାକୁ ଆଉ ଗୃହେଁନା
ପ୍ରଭୁ ଦିଅ ବିଦାୟ
ସଞ୍ଚିବାକୁ ଆଉ ଗୃହେଁନା
ପ୍ରାଣ ହେ ଦୟାମୟ ॥୧୮୫॥
ରାମ ନାମ ସଦା ଆସୁ ମୋ
ମୁଖେ କୃପା ସାଗର
ରାମ ନାମ ଗାଇ ଯାଉ ମୋ
ଜୀବ କରୁଣା କର ॥୧୮୬॥

ଏତିକି ସୁଦୟା କରିବ
ବାରେ ରଘୁନନ୍ଦନ
ଜୀବ ଯିବା ବେଳେ ମୁଖେ ମୋ
ଆସୁ ଶ୍ରୀ ରାମ ନାମ ॥୧୮୭॥

ରାମ ରାମ କହି ଜୀବନ
ଯାଉ ଏହି କାମନା
ସୁଖ ଭୋଗ ଦୁନିଆଁରେ ମୁଁ
ପ୍ରଭୁ ଆଉ ଚାହେଁନା ॥୧୮୮॥

ଦୀର୍ଘ କାଳ ବଂଚି ଅଧିକ
ଦୁଃଖ କଷ୍ଟ ଜୀବନେ
ଭୋଗ କରିବାକୁ ଚାହେଁନା
ପ୍ରଭୁ ଏଇ ଜନମେ ॥୧୮୯॥

ଚଳୁଥିବ ଅଙ୍ଗ ପ୍ରତ୍ୟଙ୍ଗ
ଥିବ ସୁସ୍ଥ ଶରୀର
କରୁଥିବି କଥାବାର୍ତ୍ତା ମୁଁ
ଯିବ ଜୀବ ମୋହର ॥୧୯୦॥

ଶେଷ ଇଚ୍ଛା ମୋର ଏତିକି
ପ୍ରଭୁ କର ପୁରଣ
ଇତି ହେଉ ଶୀଘ୍ର ଜୀବନ
ଚାହେଁ ସୁଖ ମରଣ ॥୧୯୧॥

ଜୟ ଜୟ ପ୍ରଭୁ ଶ୍ରୀରାମ
ଜୟ ମା' ସୀତା ସତୀ
ଜୟ ବୀର ହନୁମାନ ହେ
ଜୟ ବୀର ସୌମିତ୍ରି ॥୧୯୨॥

ଚରଣେ ପ୍ରଣତି ଡ଼ାକୁଛି
ଭବ ସାଗରେ ପଡ଼ି
ତ୍ରାହି କର କୃପାନିଧାନ
ବାରେ ସୁଦୟା କରି ॥୧୯୩॥

-- XX --



ସଂକ୍ଷିପ୍ତ ପରିଚୟ :- କବି ଲୋକନାଥ ମିଶ୍ର (ଭରଦ୍ୱାଜ)

ପିତା ୰ ଗୋପିନାଥ ମିଶ୍ର

ମାତା ୰ ସେବତୀ ଦେବି

ଜନ୍ମ - ୧୯୩୭ ମାର୍ଚ୍ଚ ୧୫ ତାରିଖ

ଜନ୍ମ ସ୍ଥାନ - କୋରପିଠା, ନୟାଗଡ଼

ବର୍ତ୍ତମାନର ବାସସ୍ଥାନ ଓଡ଼ଗାଁ, ନୟାଗଡ଼

ମୋ- ୯୪୩୭୮୮୨୭୬୯

ଓଡ଼ଗାଁ ରଘୁନାଥ ସମବାୟ

ମହାବିଦ୍ୟାଳୟରୁ "ମାଟିର କବି"

ଉପାଧି ପ୍ରାପ୍ତ ।

ପ୍ରକାଶିତ ପୁସ୍ତକ :- ୧. ପ୍ରଭୁ ରଘୁନାଥ ଭଜନ ମାଳା ।

୨. ଜୟଶ୍ରୀ ରଘୁନାଥ (ରଘୁନାଥ ଭଜନ)

୩. ମନ ମରାଳ ଝୁରେ (କାବ୍ୟ)

୪. ଉର୍ବଶୀ (କାବ୍ୟ)

୫. ଜୀବନ ଓ ଜ୍ୱଳନ (କାବ୍ୟ)

୬. ଏଠି ସବୁ ଚଳିବ (ବ୍ୟଙ୍ଗ କବିତା)

୭. ଆ'ଜହ୍ନ ମାମୁଁ (ଶିଶୁ କିଶୋର କବିତା)

୮. ନିଃସଂଗ କ୍ରୋଞ୍ଚ (ଗାଥା କବିତା)